# ମୋ କାଳିଆ ସୁନା

## ତୃତୀୟ



ସମ୍ପାଦିତ

ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସ ।

ମୂଲ୍ୟ [illegible]



# ମୋ କାଳିଆହାତୀ ।

( ତୃତୀୟ )



( ମଳୟ ଅଚଳ କୋଳରୁ ଛୁଟେ )

କହ ମୋ କାଳିଆ          କାହିଁ ମାଳିଆ
କଳାପିରୂଳିଆ କାହ୍ନୁ ହେ !
କଦମ୍ବ ମୂଳ କି          ମନେ ପଡ଼ୁ ନାହିଁ ?
କନ୍ଦର୍ପ ମୋହନତନୁ ହେ !
କଳନ୍ଦଜା କୂଳ ଭୁଲ ।
ତଲ ତଳକ ନାସିକା ଫୁଲ ହେ । ୧ ।



ଗଡ଼ୁ ବାହାରେ କି          ଖେଳ ଖଞ୍ଜନାକ୍ଷୀ
ଦେଲେ ବୋଲ ମନେ ପକା ହେ ।
ଖସି ଅସି ତହୁଁ          ଲଚିଛ ଏଠାରେ
ହୃଦୟରେ ବହ ଦକା ହେ ॥
ଖଣ୍ଡ ଲଡୁ ପର ଖିଅ ।
ଖଣ୍ଡଶେଖର ବଙ୍କାଅଖିଅ ହେ । ୨ ।



ଗଲ୍ପ କ ପାଠଶାର          ଗନ୍ତୁଣୀଙ୍କର
ଗାଳି ମନ୍ଦ ଖାଇବା'ର ହେ ।
ଗମ୍ଭୀର ବଣରେ          ଗୋଡ଼ ଛନ୍ଦ ଦେଇ
ଗୁପଚେ ହୋଇଛି ସ୍ଥିର ହେ ॥
ଗଜା ଡାଳିମ୍ବକୁ ଖାଇ ।
ଗତ କଥା ଅଭ ମ. . ନାହିଁ ହେ । ୩ ।



ଘନ ସୁନ୍ଦର ହେ          ଘଡ଼ିକି ଘଡ଼ିତ
ଘଣ୍ଟ ମାଦଳ ବାଜଇ ହେ ।
ଘଣ୍ଟି ହାତ ନେଇ          ଧେନୁ ଗୋପଭାଇ
ଘୋର ବନେ ଖାଅ ଯାଇଁ ହେ ॥
ଘଣ୍ଟି ଘାଟୁ . . ମୋର !
ଘନାବର୍ତ୍ତି କ୍ଷୀର ଦଧି ଗ୍ରେର ହେ । ୪ ।



ଙ୍କ୍ଲସାଗ ହୁଅ          ମାରୁଥାଅ ଙ୍ଗ
ଉପବନ ବୃନ୍ଦାବନେ ହେ ।
ଙ୍ଘାଠି କରିଅ          ଗୋପ ରମଣୀଙ୍କି
ମୋହନମୁରଲୀ ସ୍ୱନେ ହେ ॥
ଙ୍ଗନମାନଁ କର ସିନା ।
ଉଡ଼ିଜ ବ୍ରଜେ ଏଣୁ ନିନ୍ଦା-ବାଣୀ ହେ । ୫ ।



ଚନ୍ଦନ ପାଟିଅ ଚକ୍ଷୁ ଚଟାଣିଅ
ଚଳାଇ ଗୋଧନ ପଲ ହେ ।
ଚଙ୍ଗ ଚଙ୍ଗିଅ ମୋ ଚିତ୍ତ ଚମତ୍କାଇ
ଚରଣ ଛନ୍ଦା ଗୋପାଳ ହେ ॥
ଚନ୍ଦ୍ରାବଳୀ ଖିଅଳିଅ ।
ଚମ୍ପା ମାଳତୀ ମଲ୍ଲୀ ଫୁଲିଅ ହେ । ୬ ।



ଛଇଲ ନାଗର ଛଳେ ଗୋପୀଙ୍କର .
ଛଙ୍କାସର ଛେନା ଚୋର ହେ ।
ଛନ୍ଦଣୀ ଦଉଡ଼ି ଛଡା ବେତବାଡ଼ି
ଛପାଇଛ କେଉଁଠାର ହେ ?
ଛଦ୍ମ ବେଶ ଏହି ପରି !
ଛଳ ଛଳିଅ ମୁରଲୀଧାରୀ ହେ । ୭ ।



ଜାଗି ଜଳ ଘାଟେ ଜବା ଅଧରଶ୍ରୀ
ଜଞ୍ଜାଳ ଲଗାଅ କେତେ ହେ ।
ଜଡ଼ିତ କଣ୍ଠରେ ଗଦ ଗଦ ସ୍ୱରେ
ଜଣା ଜଣାଙ୍କ ଅଗ୍ରତେ ହେ ॥
ଜନମାଅ ନୂଆ ଭାବ !
ଜଗତରେ ଯାହା କି ନ ଥିବ ହେ । ୮ ।



ଝମକେ ଗୋଷ୍ଠ ବାଳୀ                    ଲଳିତା ଚତୁର
ଝମକ ଝୁଣ୍ଟିଆ ଶୁଣି ହେ ।
ଝଟକେ ନୀସାଇଁ                    ଗୁପତ ଚରିତ
ଝଟକର ଦଅ ଭଣି ହେ ॥
ଝସ ମୁକୁତାମାଳଅ ।
ଝଲମଲ ପୀତ ଦୁକୂଳଅ ହେ । ୯ ।



ଞିଅଁମ କରଣ                    ବଂଶୀ ଛୁଇଁ ସାଣ
ଞଡ ପକାଅ ଯନ୍ତ୍ରିକ ହେ ।
ଞଅଁଗିଲା ହୃଦ                    ଞକୁଞ୍ଜ ବହାସ
ଞାଳ ଝୀନ ବସନାଙ୍କି ହେ ॥
ଞରମାଣି ଛର ଦେଇ ।
ଞଶା ପୁହାଅ ପର କହାଇ ହେ । ୧୦ ।



ଟହ ଟହ ହସ                    ଛଡ଼ାଇ ଦଅନ୍ତ
ଟଭାବନୀ ସଖୀଯାକ ହେ ।
ଟପାଇ ନ ଦେଇ                    କୁଞ୍ଜ ଦୁଆରକୁ
ଟଳାନ୍ତ ଭୁମ୍ବ ବରେବକ ହେ ॥
ଟଶୋଟଣି ଛର କେତେ ।
ଟହଲନ୍ତ ବନସ୍ତ ପର୍ଯ୍ୟନ୍ତେ ହେ । ୧୧ ।



ଠକ ଚିନ୍ତାମଣି　　ଠକ୍କା ଅବା ତାଙ୍କୁ
ଠଣା କରନ୍ତୁ ଏଠାଇଁ ହେ ।
ଠଉରାଇଲଣି　　ଠାକୁରାଣୀ ଧର୍ମ
ଠଣିପାଦ ଧରି ତୁମ୍ଭ ରେ ॥
ଠସ ଭଙ୍ଗୀ ଗଲ୍ପ କେଣେ ?
ଠାଁ ଠାର ବାଙ୍କାନେତ୍ର କୋଣେ ରେ । ୧୨ ।



ଡମ୍ବରୁ କଟିଅ　　ଡଉଲ ଗୁଡ଼ଅ
ଡକାଇତଙ୍କର ଗୁରୁ ହେ ।
ଡର ନାହିଁ ତଳେ　　ଡକାଇ ବଂଶୀରେ
ଡଗର ବନ ପଥରୁ ହେ ॥
ଡଙ୍କଣୀଙ୍କ ପଞ୍ଚ ହର ।
ଡଙ୍କ ମୋଡ଼ାଅ କୁଳ ଅଭେସ୍ତ ହେ । ୧୩ ।



ଢମାଳିଆ ଗୀତେ　　ଢଳ ଢଳ ନେତ୍ରେ
ଢଙ୍ଗ ତ ଦେଖାଅ ଢେଢେ ହେ ।
ଢକା ବାଜେ କୁଳେ　　ଢୁ ଶବ୍ଦ କଟେ
ଢାଳାପାଙ୍ଗୀ ଝର ଢୋଡେ ହେ ॥
ଢମ ପଣତି ତୁମ୍ଭର ।
ଢନ୍ତା ଗନ୍ଧିଜ ଢଣ୍ଢୁର ହେ । ୧୪ ।



ଅଚଳନ ଧନ                ଅଟ ଭକ୍ତଙ୍କର
ଅଖିଳ ଜଗତପତି ହେ ।
ଅଭୟ ଦାୟକ                ଅରକ୍ଷ ରକ୍ଷକ
ଅଗତିର ଅଟ ଗତି ହେ ॥
ଅଞ୍ଜନ ଗଞ୍ଜନ କାନ୍ତି ।
ଅହି ଶିର ନାଚୁଅ ମୂରତି ହେ । ୧୫ ।



ତନୁ ପାତଳିଅ                ତଗର ମାଳିଅ
ତପନସୁତା କୂଳିଅ ହେ ।
ତରୁଣୀ ରାଧିକା                ତଳପା ତଳିଅ
ତମାଳ ତାଳ କାଳିଅ ହେ ॥
ତରୁ-କଦମ୍ବ-ମୂଳିଅ !
ତପତ-କାଞ୍ଚନ-ଦୁକୂଳିଅ ହେ । ୧୬ ।



ଥରକୁ ଥର ତ                ଥିରଗମନାଙ୍କୁ
ଥକାଅ ନେଇ କାନନେ ହେ ।
ଥଙ୍କା ପରିହାସ                ଥୋଦ୍ରିମି କା ନ୍ଧସା
ଥୋଇଅଛ କେଉଁସ୍ଥାନେ ହେ ?
ଥୟ ନ ହୁଅ ତ ଦଣ୍ଡେ ।
ଥରୁଥାଅ ତ ଶରଦ-କାଣ୍ଡେ ହେ । ୧୭ ।



ଦଶ ପାଞ୍ଚ ସଖା        ଦଳ ବଳ ପୋଖା
ଦାମ ସୁଦାମ ସହିତେ ହେ ।
ଦ୍ୱାଦଶ ବନରେ        ଦରଶୂନ୍ୟ ହୋଇ
ଦନ ଜଅ ବଂଶୀଗୀତେ ହେ ॥
ଦାଉ ପଡ଼େ ଗୋପେ ଯେତେ ।
ଦେଉଥାଅ ଜବାବ କାହିଁତେ ହେ । ୧୮ ।



ଧନ୍ୟ ଅଦ କନ୍ୟା        ଧରଣୀ ମଣ୍ଡନା
ଧବ ଭାବେ ଥିଲେ ବର ହେ ।
ଧରି ତାଙ୍କ ନାମ        ଧ୍ୱନି କରୁଥିଲ
ଧବଳୀ ପଛେ ବିହର ହେ ॥
ଧଡ଼ାଚୂଡ଼ା ପିନ୍ଧା କାହ୍ନୁ ।
ଧପାଦଅ ନୀଳମଣି ତନୁ ହେ । ୧୯ ।



ନଟବର ବେଶେ        ନବୀନ ବଳାସେ
ନୟନ ଭଙ୍ଗୀ ଖେଳାଅ ହେ ।
ନବ ନାଗରୀଙ୍କି        ନବ ନବ ରସେ
ନବୀନ କୁଞ୍ଜେ ବୁଲଅ ହେ ॥
ନଦୀକୂଳ ବୃନ୍ଦାବନେ ।
ନବ ଲୀଳା ଭଅଅ ଯତନେ ହେ । ୨୦ ।



ପଦ୍ମା ଶୈବ୍ୟା ଚନ୍ଦ୍ରା ପରହାସୀ ବୃନ୍ଦା
ପଦ୍ମିନୀ ଶ୍ରୀମତୀ ଧନୀ ହେ ।
ପରମାସୁନ୍ଦରୀ ପଲ୍ ପଲ୍ କରି
ପଙ୍ଖା ଅଲ୍‌ଟଙ୍କୁ ଧେନି ହେ ॥
ପରି ସେବନ୍ତି ଚରଣେ ।
ପଟାଖେଳା ଲୀଳା ହୁଡ଼ି ପଣେ ହେ । ୨୧ ।



ଫଗୁଣ ମାସରେ ଫଗୁଖେଳ ବିଧି
ଫୁଲ୍‌ବନେ କି ସୁନ୍ଦର ହେ ।
ଫରୁଅସ୍ତ୍ରନାଙ୍କ . ଫରଗୁ ପଣନ୍ତେ
ଫିକଟରେ ବନ୍ଧା ହେବାର ହେ ॥
ଫଣି ଶିର ନୃତ୍ୟକାରୀ ।
ଫନ୍ଦା କରିଥିଲେ ଗୋପନାରୀ ହେ । ୨୨ ।



ବସନ୍ତ ଉତ୍ସବେ ବଞ୍ଜୁଳ କୁଞ୍ଜରେ
ବଶ ହୋନ୍ତେ ମୁଗ୍‌ଧାଗଣେ ହେ ।
ବହୁଣି ଈରଷା ବଣବଧୂ ଜଣେ
ବହୁକଷ୍ଟ ଦେଲା ବଣେ ହେ ॥
ବଡ଼ ବାଧିଲା ତୁମ୍ଭଙ୍କୁ ।
ବଳେ ଶରଣ ମାଗିଲ୍ ତାଙ୍କୁ ହେ । ୨୩ ।



ଭୃର ଦନ୍ତେ ତୃଣ ଭଲ ହଇରାଣି
ଭେଟ ପାଇଁ ହୋଇଥିଲ ହେ ।
ଭଲା ଭଲା ବେଶ ଭଲେ ସାଜ ଅଙ୍ଗେ
ଭାନୁଜେମା ପାଶେ ଗଲ ହେ ॥
ଭରଷା ନୋହିଲେ କେହୁ ।
ଭୁଷାଛଳେ ଯୋଗୀ ହେଲ ତହୁଁ ହେ । ୨୪ ।



ମହା ମାନମୟୀ ମନ ବଦଳାଇ
ମଧୁର ଶ୍ରୀବୃନ୍ଦାବନେ ହେ ।
ମଥା ଲୁଟାଇଲ ମହିଳାମଣିର
ମଞ୍ଜୁଳ ପଦ-ନଳିନେ ହେ ॥
ମନେ ନାହିଁ କି ସେ କଥା ?
ମନ୍ଦହାସେ ପୋଡିଥିଲ ମଥା ହେ । ୨୫ ।



ଯଉବନ ରଙ୍କ ଯଶ କୀର୍ତ୍ତି ଯାଙ୍କ
ଯିବ କି ମନରୁ ତଳେ ହେ ।
ଯାହା ଯାହା ବ୍ରଜେ ଯେତେ ଅରଜାଛ
ଯୁଗଳ ମିଳନ ଛଳେ ହେ ॥
ଯତଧିଅନ ମୁରତି ।
ଯହିଁ ତହିଁ ତ ଏ ମାନ ଖ୍ୟାତ ହେ । ୨୬ ।



ରମା ଉମା ରତି    ରତିଏ ଯା କତି
ରହୁତବେ ନାହିଁ ତୁଳରେ ହେ ।
ରସିକାମଣି ଶ୍ରୀ    ରାଧିକା ସୁନ୍ଦରୀ
ରହ ତମାଳ ମୂଳରେ ହେ ॥
ରଟୁଥାନ୍ତି ତୁମ୍ଭ ନାମ ।
ନୃପଶେଖର ହେବାରୁ ବାମ ହେ । ୧୭ ।

ଲତା ଦୋଳଖେଳେ    ଲଳନାଙ୍କ ମେଳେ
ଲଭୁ ଥାଅ କେଡ଼େ ସୁଖ ହେ !
ଲଳିତା ବିଶାଖା    ଲବଙ୍ଗ ଲତିକା
ଲଜ୍ଜା ଦିଅନ୍ତି ଅନେକ ହେ ॥
ଲଗାଇଣ କେତେ ଗେଲ ।
ଲକ୍ଷ୍ୟ ନୁହ ତୁମ୍ଭେ ତାଙ୍କ ତୁଲ ହେ । ୧୮ ।

ବନ୍ଧୁ ମନେ ହେଜ    ଦିନେ ଦିନେ ଗଜ
ବଧୁଲି ଅଧର ହେଲେ ହେ ।
ବସାଇ ପିଠିରେ    ବନୋଦମୀ ତୁଲେ
ବଡ଼ କଉତୁକ କଲେ ହେ ॥
ବନମାଳିଆ କାଳିଆ !
ବିରଚିଲ ସେ ଛବିକୁ କାହିଁ ହେ ? । ୧୯ ।

ଶରତ ପୂନିଅଁ ଶଶୀ କିରଣରେ
ଶବଦାଇ ବଂଶୀ ସ୍ୱନ ହେ ।
ଶଂଧ୍ୟା ଶତ୍ରରେ ଶୀଘ୍ରେ ବନେ ଝାଶି
ଶକଟାସୁର ନାଶନ ହେ ॥
ଶତ ଶତ ମୂର୍ତ୍ତି ହୋଇ ।
ଶକ୍ତି ଦେଖାଇଛ ପ୍ରେମ ଦେଇ ହେ । ୩୦ ।



ଷଣ୍ଡ ମୁଣ୍ଡ ମୋଡ଼ା ଷୋଳ ସହସ୍ର ଗୋପୀ
ଷଣ୍ଢସୁନ୍ଦରତୋଷଙ୍କି ହେ ।
ଷଡ଼ରସେ ମାତ ସର୍ବଦା ରହାଥ
ଷଡ଼ାର୍ଦ୍ଧ ଭଙ୍ଗି ଅଠିକ ହେ ॥
ଷଟ୍‌ପଦ ଭଳି ହେଲ ।
ଷାଠି ଗୁରବନେ କି ନ କଲ ହେ ? । ୩୧ ।



ସୁଞ୍ଜବେଲ କୁଞ୍ଜ ସରଣୀକି ଗୁମ୍ଫି
ସଜାଡ଼ି ବଢ଼ାଅ ପାନ ହେ ।
ସଖିମାନେ ନିତ ସତର୍କେ ଥାନ୍ତି
ସମର୍ପି ମନ ପରାଣ ହେ ॥
ସଙ୍ଗେ ରାଧା ରାଣୀଙ୍କର ।
ସର୍ବ୍ବେ କରନ୍ତି କୁଞ୍ଜେ ସଞ୍ଚାର ହେ । ୩୨ ।



ହୁଜାଇଲ କାହିଁ ହୃଦ ସେ ସମ୍ମତ
ହସ କଉତୁକ ଖେଳ ହେ ?
ହକାର କୋଣରେ ହାଜର ହୋଇଛ
ହଟିଅ ସାକ୍ଷୀଗୋପାଳ ହେ ।
ହସ୍ତେ ଅଛୁ ସେ ମୁରଲୀ ।
ହରଷ ତ ମୁଖୁଁ ନୋହେ ଖାଲି ହେ ।



କ୍ଷମାନିଧାନ ହେ କ୍ଷୋଭ କିପାଁ ନୁହେ
କ୍ଷିତ ମଣ୍ଡଳାଙ୍କୁ ଚନ୍ଦ୍ର ହେ ।
କ୍ଷପା କର ମୁଖୀ କ୍ଷୀରସିନ୍ଧୁ କେମା *
କ୍ଷାତ ସେବକ ଦୁହିତ ହେ ॥
କ୍ଷଣେ ନ ଛାଡ଼ନ୍ତି ବୋଲି ।
କ୍ଷମେ ବ୍ରଜକୁ ଯାଇଛ ଭୁଲି ହେ । ୩୪ ।

ଶ୍ରୀ ବୈଷ୍ଣବଚରଣ ଦାସ



---

* ବେଲ ମହାପାତ୍ର ନାମକ ବିଖ୍ୟାତ ସେବକଙ୍କର କନ୍ୟାଙ୍କର ପ୍ରସ୍ତରମୂର୍ତ୍ତି ଶ୍ରୀ ଶ୍ରୀ ସାକ୍ଷୀଗୋପାଳ ଜୀଉଙ୍କ ବାମପାର୍ଶ୍ୱରେ ବର୍ତ୍ତମାନ ବିଦ୍ୟମାନ ଅଛନ୍ତି ।

ସମାପ୍ତ ।

---

କଟକ ଲକ୍ଷ୍ମୀନାରାୟଣ ପ୍ରେସରେ ଶେଖ୍ ନଜର ମୋହମ୍ମଦଙ୍କ ଦ୍ୱାରା ମୁଦ୍ରିତ, ୧୯୩୦—୧୦୦୦ ଖଣ୍ଡ ପୁସ୍ତକ ।

ପ୍ରକାଶକ :—ଶ୍ରୀ ଦାଶରଥି ଦାସ, ପ୍ରୋପ୍ରାଇଟର୍
ଦାଶରଥି ପୁସ୍ତକାଳୟ,
ବାଲୁବଜାର,
ପୋ: ଅ: ଗୃନ୍ଦମାଚୌକ, କଟକ ।



PRINTED BY
SHAIKH NAZIR MOHAMMAD
**The Lakshmi Narayan Press**
**Mohammadya Bazar,**
**CUTTACK.**
**1930**

ଭିକ୍ଷା ଟ ୦ / ଏକଅଣା ମାତ୍ର ।

# ବିଜ୍ଞାପନ ।



ବ୍ରଜବାସୀ ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସଙ୍କ କୃତ ସମସ୍ତ ନାଟକ ଅଳ୍ପ ନାକଠରେ ବିକ୍ରୟ ନିମିତ୍ତ ରକ୍ଷିତ ଅଛି । ତନ୍ମଧ୍ୟରୁ କେତେକ ଗ୍ରନ୍ଥର ନାମ ନିମ୍ନରେ ଦିଆଗଲା ।

---

| | |
|---|---|
| **ବୃହତ୍ ମାନଭଞ୍ଜନ ନାଟକ** | **ଟ ୦ ୪** |
| ଶ୍ରୀକୃଷ୍ଣଙ୍କ ଜନ୍ମଲୀଳା ନାଟକ ୧ମ ଓ ୨ୟ | ଟ ୦ ୪୶ |
| ଦୋଳଲୀଳା ନାଟକ | ଟ ୦ ୵ |
| କାଳୀୟଦମନ ନାଟକ | ଟ ୦ /୬ |
| କୃଷ୍ଣକାଳୀ ନାଟକ | ଟ ୦ ୶ |
| ଦାସ୍ୟଲୀଳା ନାଟକ | ଟ ୦ । |
| ଗୀତଗୋବିନ୍ଦ ନାଟକ | ଟ ୦ ।/ |
| କଳଙ୍କଭଞ୍ଜନ ନାଟକ | ଟ ୦ । |
| ବଂଶୀଚୋରା ନାଟକ | ଟ ୦ ୶ |
| ମୋ କାଳିଅହାଡୀ ୨ୟ ଟ ୦ /, ୩ୟ ୦ / ୪ର୍ଥ | ଟ ୧ / |

ଏତଦ୍ବ୍ୟତୀତ ଅନ୍ୟାନ୍ୟ ସମସ୍ତ ପ୍ରକାର
ପୁସ୍ତକ ଏଠାରେ ସୁଲଭ ମୂଲ୍ୟରେ ମିଳେ ।

**ବିଚିତ୍ର ମହାଭାରତ ୧୮ପର୍ବ ଏକତ୍ର ବନ୍ଧାଇ ମୂଲ୍ୟ ଟ ୦୫୪**

---

ପ୍ରାପ୍ତିସ୍ଥାନ :—

**ଦାଶରଥି ପୁସ୍ତକାଳୟ, କଟକ ।**